# ମୋ ଗାଈ



ଖୁସିରେ ପଢିବା ଅଭିଯାନ

**ଭାରତ ଜ୍ଞାନ ବିଜ୍ଞାନ ସମିତି**

# ମୋ ଗାଈ


ମୂଳ ଗୁଜରାଟୀ ଲେଖା : **ଗିଜୁ ଭାଇ ବାଧେକା**

ଅନୁବାଦ : ବିନୟକୃଷ୍ଣ ପଟ୍ଟନାୟକ

ଅଙ୍କନ : ରୋହିତ ସୁପକାର
ଗୌରୀ ଶଙ୍କର ବେହେରା

ପ୍ରକାଶକ : ଭାରତ ଜ୍ଞାନ ବିଜ୍ଞାନ ସମିତି,
ସି-୭, ହାଉସିଂ ବୋର୍ଡ୍ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩
ଫୋନ୍ : (୦୬୭୪) ୪୭୦୮୯୧

ଅଙ୍ଗସଜ୍ଜା : ଓରିକନ୍ କମ୍ପ୍ୟୁଟରସ୍, ଭୁବନେଶ୍ୱର ।

ମୁଦ୍ରଣ : ପଦ୍ମା କମର୍ସିୟାଲ୍, ଭୁବନେଶ୍ୱର

ସହଯୋଗ ରାଶି : **ତିନି ଟଙ୍କା ମାତ୍ର**

ପ୍ରକାଶ କାଳ : ଜାନୁଆରୀ ପହିଲା, ୧୯୯୭


ଏହି ପୁସ୍ତିକାଟି "ଖୁସିରେ ପଢିବା ଅଭିଯାନ" (Jan Vachan Andolan) ପାଇଁ ପ୍ରସ୍ତୁତ କରାଯାଇଛି । ଓଡିଶାର ଗାଁ ଗହଳିରେ ଲୋକଙ୍କର ପଠନ ରୁଚିକୁ ତେଜିବା ସାଙ୍ଗକୁ ଏକ ପାଠାଗାର ଆନ୍ଦୋଳନ ଚଳାଇବା ପାଇଁ ସମିତି ତରଫରୁ ଏହା ଏକ ଦେଶବ୍ୟାପୀ ଉଦ୍ୟମ ।


- **My Cow** • Original Gujarati - **Giju Bhai Badheka**
- Oriya Transcreation - Binaya Krushna Pattanayak.
- Illustration - Rohit Supkar • Published by B.G.V.S., Orissa for Jan Vachan Andolan • Price - Rs.3.00
- Publication Period - 1st January 1997.

ଦିନେ ମୁଁ ଭାବିଲି, ଗାଈଟିଏ ପାଳିଲେ ହୁଅନ୍ତା । ଗଉଡ ଦେଉଥିବା କ୍ଷୀରରୁ ତ ମନ ଛାଡି ଗଲାଣି । ସବୁବେଳେ ସେ ପାଣି ମିଶା କ୍ଷୀର ଦେଉଛି । କହିଲେ ପୁଣି ଚଢ଼ା ଗଳାରେ ଜବାବ ମିଳିବ ''ଆପଣଙ୍କୁ ନ ପୋଷେଇଲେ କ୍ଷୀର ନେବା ବନ୍ଦ କରି ଦିଅନ୍ତୁ ।'' ନିଜେ ଗାଈଟିଏ ରଖିଲେ , ପ୍ରତିଦିନ ସଜ କ୍ଷୀର ମିଳିବ । ସମୟ ଅସମୟରେ କ୍ଷୀର ଲୋଡା ହେଲେ ଗାଈ ଠାରୁ ସଙ୍ଗେ ସଙ୍ଗେ ଦୁହିଁ ଦେଇ ହେବ । ଗାଈଟିଏ ଥିଲେ ଆମର ଘର ଆଉ ଅଗଣା ବି ସୁନ୍ଦର ଦିଶିବ । ଗୁହାଳ ସଫା କରିବା କାମ ବି ବିଶେଷ କଷ୍ଟ ନୁହେଁ । ମଇଁଷି ପାଳିବା କଥା ଅଲଗା । ମଇଁଷି ଅଗଣା ଓ ଗଳିକୁ ଭା'ରି ଅସନା କରିବ । ଏମିତି କରିବ ଯେ, ତୁମେ ସେଠାରେ ଠିଆ ହୋଇ ପାରିବ ନାହିଁ । ଗାଈ ବାଛୁରୀ କଅଁଳାଇବ । ଘରେ ପିଲାମାନେ ତା' ସାଙ୍ଗରେ ଖେଳିବେ । ଛୋଟ ଛୋଟ ବାଛୁରୀ ଓ ଛଡା ସାଙ୍ଗରେ ଖେଳିବାକୁ ପିଲାଙ୍କୁ ଭା'ରି ମଜା ଲାଗିବ ।



କଥାଟି ମୋ ମନରେ ଲାଖିଗଲା । ପିଲାଙ୍କ ମା'ଙ୍କୁ ଏହା ଜଣାଇଲି । ସେ ରାଜି ହୋଇଗଲେ । କହିଲେ , " ଏଠାରେ କ୍ଷୀର ତ ଅତି ପାଣିଆ ଓ ପତଳା ହେଲାଣି । ନିଜେ ଗାଈଟିଏ ରଖିଲେ ଆମକୁ ଘର ପାଇଁ କ୍ଷୀର ମିଳିଯିବ । ଗାଈ ଗୋବରରେ ଘଷି ବି ପରା ଯାଇପାରିବ । ଘରେ ଘିଅ, ଦୁଧ ତ ଏମିତି ଦରକାର ନାହିଁ ଯେ ସବୁ କ୍ଷୀର ସରିଯିବ । ବଳକା କ୍ଷୀରରେ ଦହି ବସାଇବା । ପାଖ ପଡୋଶୀଙ୍କୁ ଚହ୍ଲା ବି ଦେଇପାରିବା । ସଜ ଲହୁଣୀରୁ ବଢ଼ିଆ ଘିଅ ବି ମାରିହେବ । ଖାଲି ଗାଈ ଦୁହିଁବା କଥାଟା ଉଠୁଛି । କିନ୍ତୁ ସେହି କାମ ବି ମୁଁ ....."

କଥା କାଟିକି ମୁଁ କହିଲି ," ନା, ନା, ମୁଁ କ୍ଷୀର ଦୁହିଁ ଦେବି । ପିଲାବେଳେ ମୁଁ ଛେଳିର କ୍ଷୀର ଦୁହୁଁଥିଲି । ତେଣୁ ଗାଈ ଦୁହାଁ ଶିଖିବାକୁ ମତେ ବେଶୀ ସମୟ ଲାଗିବ ନାହିଁ । ଗାଈର ସବୁ ସେବା ମୁଁ କରିବି । ତୁମ ପାଖରେ ଘର କାମ କେଉଁ କମ୍ ଅଛି ଯେ ? "

ପିଲାଙ୍କ ମା' ରାଜି ହୋଇଗଲେ । ଗାଈ କିଣିବା କଥା ଠିକ୍ ହୋଇଗଲା ।

ସେହି ଦିନ ଠାରୁ ମୁଁ ଗୋଟିଏ ବଢ଼ିଆ, ଡଉଲ ଡାଉଲ ଓ ଶାନ୍ତ ସ୍ୱଭାବର ଦୁଧିଆଳୀ ଗାଈ ଖୋଜିବାରେ ଲାଗିଗଲି । ଗାଁ ଗଉଡ ସାହିର ସବୁ ଘର ଖୋଜିଆସିଲି । କିନ୍ତୁ ଗୋଟିଏ ବି ଗାଈ ପାଇଲି ନାହିଁ । କାହାର ରଙ୍ଗ ଭଲ ଲାଗିଲା ନାହିଁ ତ କାହାର ଶିଙ୍ଗ ପସନ୍ଦ ହେଲା ନାହିଁ । କାହାର ଲାଞ୍ଜ ବଙ୍କା ଥିଲା ତ କାହାର କାନ ଛୋଟ ଥିଲା । କିଏ ଦୁଧିଆଳୀ ହେଲାବେଳକୁ ଜମା ଶାନ୍ତ ସ୍ୱଭାବର ନ ଥିଲା । କେଉଁ ଗାଈଟି ମୋଟା ସୋଟା ହୋଇ ତାଗଡ଼ା ଥିଲା, କିନ୍ତୁ ଏକ -ଦୁଇ ସେରରୁ ବେଶୀ କ୍ଷୀର ଦେଉ ନ ଥିଲା ।

ମୁଁ ମୁହଁ ଅନ୍ଧାରରୁ ଉଠି ପଡ଼ି ସକାଳର ନିତ୍ୟକର୍ମ ଚଟାପଟ୍ ସାରି ଦେଉଥିଲି । ତା ପରେ ଗାଈ ଖୋଜିବାକୁ ବାହାରି ପଡୁଥିଲି । ଆଜି ଏ ଗାଁ ତ କାଲି ସେ ଗାଁ କୁ ଯାଏ । ପ୍ରତିଦିନ ଗୋଟିଏ ଗୋଟିଏ ନୂଆ ଗାଁ ବୁଲି ଆସୁଥାଏ । କିନ୍ତୁ ସଞ୍ଜ ବେଳକୁ ନିରାଶ ହୋଇ ଟନକୁ ଫେରିଆସେ । ମନଲାଖି ଗାଈଟିଏ କେଉଁଠି ବି ପାଉ ନ ଥାଏ । ଘରେ ପହଞ୍ଚି ପିଲାଙ୍କ ମା'ଙ୍କୁ ସବୁ କଥା ଶୁଣାଏ । ସେ ବିଚାରୀ ସବୁ ଶୁଣି ଶେଷରେ କହନ୍ତି, " ଭଲ ଗାଈଟିଏ ପାଇବାକୁ ହେଲେ ତୁମକୁ ଏପରି ଲାଗିବାକୁ ହିଁ ପଡ଼ିବ ।"

ଗାଈ ଖୋଜାଖୋଜିରେ କିଛିଦିନ ବିତିଗଲା । ନିତି ଦିନିଆ କାମଧନ୍ଦା ପଛେଇଗଲା । ଲଗ୍ନ ପଚାରିବାକୁ ଆସୁଥିବା ଲୋକ ଫେରି ଯାଉଥାନ୍ତି । ସତ୍ୟ ନାରାୟଣ ପୂଜା ପାଠ ପାଇଁ ଲୋକେ ମତେ ଡ଼ାକୁଥିଲେ । କିନ୍ତୁ ସଞ୍ଜରେ ଫେରିଲା ବେଳକୁ ମୁଁ ଏତେ ହାଲିଆ ହୋଇ ପଡୁଥିଲି ଯେ, କୁଆଡେ ଯିବାକୁ ମନ ବଳୁ ନ ଥିଲା । ମୁଁ ମନା କରି ଦେଉଥିଲି ।

କିନ୍ତୁ ଏତେ ଖୋଜିବା ସତ୍ତ୍ୱେ ବି ମୁଁ ମନପସନ୍ଦ ଗାଈଟିଏ ପାଉ ନ ଥିଲି । କ'ଣ କରିବି ? ମୁଁ ସବୁ ବେଳେ ଭାବୁଥିଲି ଗାଈ କେବେ ଆସିବ ? କେବେ ମୁଁ ତା'ର ପିଠି ଆଉଁଷିବି ? କେବେ ' ପିଇ....ପିଇ ....' କହି ତା'କୁ ପାଣି ପିଆଇବି ? ଆଉ କେବେ ଆ...ଆ...କହି ଗାଈଟିକୁ ପାଖକୁ ଡ଼ାକିବି ?

ଗାଈଟି ଆସିବା ଆଗରୁ ମୁଁ ତା' ପାଇଁ ଘୁଙ୍ଗୁର ବନାଇ ଆଣିଲି । ତା'ର ଶିଙ୍ଗକୁ ରଙ୍ଗ କରିବାକୁ ସିନ୍ଦୁର କିଣିଲି । ତା ପାଇଁ ନଡ଼ା ଘାସ ବି କିଣି ରଖିଲି ।

ପିଲାଙ୍କ ମା'ର ଆଗ୍ରହ ବି କହିଲେ ନ ସରେ । ସେ ସାହି ସାରା ସମସ୍ତଙ୍କୁ କହି ସାରିଥିଲେ, ଗାଈ ଆସିଲେ ତୁମେ ସମସ୍ତେ ଖୁସିରେ ଚହ୍ଲା ନେଇ ଆସିବ । ଗାଁର କୁମ୍ଭାର ଭାଇ ହାଣ୍ଡି ବିକିବାକୁ ଆସିଥିଲା । ତା' ଠାରୁ ସେ କେତୋଟି ଠେକି ବି କିଣି ରଖିଥିଲେ ।

ଏପରି ଦେଖୁ ଦେଖୁ କିଛି ଦିନ ବିତିଗଲା । ଦିନେ ଗାଈ କଥା ଭାବୁ ଭାବୁ ମତେ ନିଦ ଆସି ଯାଇଥାଏ । ମୁଁ ଗୋଟିଏ ସପନ ଦେଖିଲି ।

ସପନରେ ଦିଶିଲା ଏକ ବିରାଟ ବରଗଛ । ଗଛ ଛାଇରେ ଗାଈ ଗୋଠଟିଏ ବସିଥାଏ । ଗାଈଆଳ ଟୋକା ଗଛ ଡ଼ାଳରେ ବସି ବଂଶୀ ବଜାଉଥାଏ । ଗାଈମାନେ ଗଛ ଛାଇରେ ବସି ପାକୁଳି କରୁଥାନ୍ତି । କିଏ ବା ଚରୁଥାଏ । କେତୋଟି ବାଛୁରୀ ଏପଟ ସେପଟ ଦଉଡୁଥାନ୍ତି । ତାଙ୍କ ବେକରେ ଘଣ୍ଟି ଝୁଲୁଥାଏ ।

ପବନରେ ଘଣ୍ଟିଗୁଡିକର ଶବ୍ଦ ଭାସି ଆସୁଥାଏ । ସବୁ ଗାଈଙ୍କ ମଝିରେ ହାତିଣୀ ପରି ଗାଈଟିଏ ବସିଥାଏ । ଧଳା ରଙ୍ଗର ଏହି ଗାଈଟି ଖୁବ୍ ସୁନ୍ଦର ଦେଖାଯାଉଥାଏ । ଶିଙ୍ଗ ଦୁଇଟି ତା'ର ବଡ଼ ସୁନ୍ଦର, ଗୋଲ ଓ ଡ଼ଉଲିଆ

ଜଣାପଡୁଥିଲା । ଆଖି, କାନ ଓ ମୁହଁକୁ ଦେଖିଲେ ମନ ମୋହ ହୋଇ ଯାଉଥିଲା । ପିଠିଟି ଚଉଡା ଓ ପୂରିଲା ମନେ ହେଉଥିଲା । ଲାଞ୍ଜଟି ବେଶ୍ ଲମ୍ବାକିଆ ଥିଲା । ମୁଣ୍ଡରେ ଗୋଛାଏ ଚୁଟି ଥିଲା । ଗାଈଟିକୁ ଦେଖି ଖୁସିରେ ମୋ ମନ ମାତି ଉଠିଲା ।

ମୁଁ ମନକୁ ମନ କହିଲି, " ବାସ୍, ମତେ ଏମିତି ଗାଈଟିଏ ହିଁ ଦରକାର ଥିଲା । ମତେ ତ ଏହି ଗାଈଟି ହିଁ ଲୋଡା । ମୁଁ ଏପରି ଗାଈଟିଏ ଖୋଜିବାରେ ଲାଗିଛି । "

ମୁଁ ତା'କୁ ଏକଲୟରେ ଅନାଇ ରହିଲି । ମନକୁ ମନ କହୁଥାଏ, " ବହୁତ ଭଲ ହେଲା । ଯେମିତି ଗାଈଟିଏ ଖୋଜୁଥିଲି ମିଳିଗଲା । ଏହାକୁ ଦେଖି ପିଲାଙ୍କ ମା'ତ ଖୁସିରେ ଉଚ୍ଛୁଳି ପଡିବ । ଯାଏ, ଗାଈବାଲାକୁ ପଚାରେ ଗାଈଟିର ମୂଲ କେତେ ହେବ ।"



ଗାଈ-ଜଗାଳୀ ତ ଗଛରେ ବସି ମନ ଖୁସିରେ ବଇଁଶୀ ବଜାଉଥିଲା । ମୁଁ ଧୀରେ ଯାଇ ତା' ପାଖରେ ପହଞ୍ଚିଲି । ପଚାରିଲି, " ଭାଇ, ଏ ଗାଈଟି ବିକା ହେବ ? ତା'ର ମୂଲ କେତେ ହେବ ?"

ଗାଈ ଜଗାଳୀ ମୋ ପଶ୍ନର ଉତ୍ତର ଦେବା ଆଗରୁ ଘରେ ଗୋଟିଏ ମୂଷା ଢ଼ବାଟିଏ ପକାଇ ଦେଲା । ମୋ ନିଦ ଭାଙ୍ଗିଗଲା ।

ସପନ ତ ଭାଙ୍ଗିଗଲା, କିନ୍ତୁ ସପନର ସେହି ବରଗଛ, ଗଉଡ, ଗାଈଗୋଠ, ଗୋଠ ମଝିରେ ବସିଥିବା ସେହି ଗାଈ, ଆଦି ମୋ ଆଖି ଆଗରେ ନାଚିବାରେ ଲାଗିଲା ।

ପିଲାଙ୍କ ମା'ଙ୍କୁ ଉଠାଇ ମୁଁ ସପନର ପୂରା କାହାଣୀଟି ଶୁଣାଇଲି । ଏହା ଶୁଣି ସେ ବି ଭା'ରି ଖୁସି ହେଲେ ।

ମୋ ମନରେ ସେହି ଗୋଟିଏ ଲୟ ରହିଲା - କେତେବେଳେ ସକାଳ ହେବ ? କେତେବେଳେ ମୁଁ ସପନର ସେହି ଗାଈଟିକୁ ଖୋଜିବାକୁ ବାହାରିବି ? ଏହି ଅବସ୍ଥାରେ ଭଲା ମତେ ନିଦ କେମିତି ବା ହେବ ? ଆଖି ଆଗରେ ତ ସେହି ଗାଈ, ସେହି ଗଉଡ଼ ଓ ସେହି ବରଗଛ ଛିଡ଼ା ହୋଇଥାନ୍ତି । ଚାରିଟା ବାଜୁ ବାଜୁ ମୁଁ ଉଠିପଡ଼ିଲି । ଚଟାପଟ ଦାନ୍ତପତ୍ର ଘଷିନେଲି । ଅଳ୍ପ କିଛି ଜଳଖିଆ କରିନେଲି । ହାତରେ ବାଡ଼ି ଧରିଲି । ଅଣ୍ଟାରେ ଲମ୍ବା ଥଳୀଟି ଖୋସି ମୁଁ ବାହାରିପଡ଼ିଲି ।

ଯାଉଯାଉ ପିଲାଙ୍କ ମା'ଙ୍କୁ କହିଗଲି, " ଶୁଣ, ଘରକୁ ଫେରିବାକୁ ମତେ ଚାରି ପାଞ୍ଚ ଦିନ ଲାଗିଯାଇପାରେ । ତୁମେ ଜମା ବ୍ୟସ୍ତ ହେବ ନାହିଁ । ଏଥର ମୁଁ ଆଉ ଏକଲା ଫେରିବି ନାହିଁ । "

ଗାଈ ଖୋଜି ଖୋଜି ମୁଁ ଗାଁ ଗାଁ ବୁଲିବାକୁ ଲାଗିଲି । ଏକା ଦିନରେ ମୁଁ ତିନୋଟି ଗାଁ ବୁଲିଗଲି । ଗୋଡରେ ବଳଥାଏ ଓ ମନରେ ବିଶ୍ୱାସ ଥିଲା ଯେ, ସପନରେ ଦେଖିଲା ପରି ଗାଈଟିଏ ହିଁ କିଣିବି । ପ୍ରଥମ ଦିନର ସଞ୍ଜ ଗଡ଼ିଲା । ଦିନଟାଏ ଖାଲିରେ ବିତିଗଲା । ତା'ପର ଦିନଟି ବି ସେପରି ଖାଲିରେ ହିଁ କଟିଗଲା । ତୃତୀୟ ଦିନଟି ବି ଗାଈର କୌଣସି ପତ୍ତା ମିଳିଲା ନାହିଁ । ମୁଁ ମନେ ମନେ ଭାବିଲି, ଭଲ

ମଣିଷ, ସପନ ତ ସପନ ହିଁ ହୋଇଥାଏ । ସପନରେ ଯାହା ଦେଖାଯାଏ, ତା ଭଲା କେବେ ସତ ହୁଏ ?

କିନ୍ତୁ ଏ କଥା ମୋ ଗଳା ଟପି ବାହାରକୁ ଆସୁ ନ ଥିଲା । ମତେ ଲାଗୁଥିଲା- କିଏ ମୋ ଭିତରୁ କହୁଛି, ଯେମିତି ଗାଈଟିଏ ଚାହୁଁଛ , ଠିକ୍ ସେମିତି ଗାଈଟିଏ ନିଶ୍ଚୟ ପାଇଯିବ ।

ଚତୁର୍ଥ ଦିନ ଦି' ପହର ଖରା ଟାଏଁ ଟାଏଁ କଲା । ସୂରୁଜ ଦେବତା ମୁଣ୍ଡ ଉପରକୁ ଉଠିଲେ । ଭୋକରେ ପେଟ ଆଉଟୁ ପାଉଟୁ ହୋଇଯାଉଥାଏ । ମୁହଁ ଶୁଖିଗଲା । କିନ୍ତୁ ମୁଁ ସେମିତି ଚାଲିଥାଏ । ବାଟସାରା ଗାଈ ନାଁ ହିଁ ଜପ କରୁଥାଏ ।

ସେତେବେଳେ ଆଖି ଆଗରେ ଅଳ୍ପ ଦୂରରେ ଗୋଟିଏ ବହଳିଆ ଘାସଭରା ପଡ଼ିଆ ଦେଖାଗଲା । ଆଖି ଉପରେ ହାତ ଆଢୁଆଳ କରି ମୁଁ ଦେଖିଲି, ଗୋଟିଏ ମୋଟା ବରଗଛ ରହିଛି । ଗଛର ଛାଇରେ ଗାଈ ଗୋଠଟି ବସିଥିଲା । ତାଳୁରୁ ତଳିପା ଯାଏଁ ମୋ ଦେହର ଲୋମ ଟାଙ୍କୁରି ଉଠିଲା । ମନ ଖୁସିରେ ଭରି ଗଲା । ମତେ ଲାଗିଲା ଏଇଠି ମୋ ମନପସନ୍ଦ ଗାଈଟି ମିଳିଯିବ ।

ମୋ ପାଦରେ ବଳ ଆସିଗଲା । ଉଡ଼ିଲା ବେଗରେ ଚାଲିଯାଇ ମୁଁ ବରଗଛଟି ପାଖରେ ପହଞ୍ଚିଗଲି । ସତକୁ ସତ ମୋ ସପନଟି ସତ ହୋଇଯାଇଥିଲା । ଗାଈ ଗୋଠଟିରେ କେତୋଟି ଗାଈ ବେଶ ଡଉଲ ଡାଉଲ ଥିଲେ । ସେମାନଙ୍କ ଭିତରେ ଗୋଟିଏ ତ ବହୁତ ସୁନ୍ଦର ଥିଲା । ସେମାନଙ୍କ ରାଣୀ ପରି ସେ ମଝିରେ ବସିଥାଏ । ସେ ଧୀରେ ଧୀରେ ପାକୁଳି କରୁଥିଲା । ପାକୁଳି ମଝିରେ ମଝିରେ ଘାସ ଉପରେ ଘଷି ହେଉଥିଲା । ଘଷି ହେଲା ବେଳେ ତା' ବେକର ରୂପା ଘଣ୍ଟିଟି ଠନ୍-ଠନ୍-ଠନ୍ ହୋଇ ବାଜୁଥିଲା ।

ମୁଁ ସିଧା ଗାଈଆଳ ପାଖରେ ପହଞ୍ଚିଲି । ତା'କୁ ପଚାରିଲି, " ଭାଇ, ମଝିରେ ବସିଥିବା ଗାଈଟି ବିକା ହେବ କି ? ମୁଁ ତାକୁ କିଣିବାକୁ ଚାହୁଁଛି ।"

କିଛି ବେଳ ଯାଏଁ ଗାଈଆଳ ଏକଲୟରେ ମତେ ଚାହିଁ ରହିଲା । ତା'ପରେ କହିଲା, " ହଁ ଭାଇ, ବିକା ତ ହବ । କିନ୍ତୁ ଏ ଗାଈଟା ବଡ଼ ଦୁଷ୍ଟ । ତା ପଛାରେ

କ୍ଷୀର ତ ବହୁତ; କିନ୍ତୁ ସହଜେ ଦୁହାଁଇ ଦିଏ ନାହିଁ । କ୍ଷୀର ଯେତେବେଳେ ଏପଟ ସେପଟ ବହିବାରେ ଲାଗେ, ସେତେବେଳେ ହିଁ ଟିକେ ଦୁହାଁଇ ଦିଏ ।''

ମୁଁ କହିଲି : ''ମୁଁ ତାକୁ ନେବାକୁ ଚାହେଁ । ତୁମେ ଯେତେ ଟଙ୍କା ନେବାକୁ ଚାହିଁବ ମୁଁ ଦେବି । ମୋ ଅଣ୍ଟାରେ ଟଙ୍କାଥଳୀଟି ଦେଖ ।''

ଗାଈଆଳ କହିଲା, '' ଆପଣ ଆଗ ତାକୁ ନେଇଯାଆନ୍ତୁ । ଆପଣଙ୍କ ଘରେ ରହି ସେ ଯଦି ଆରେଇ ଯିବ, ତେବେ ଦାମ୍‌ଟି ପଠାଇ ଦେବେ । ମୁଁ ଦାମ୍ ପାଇଁ ଏତେ ତରବର ନୁହେଁ ।''

ଗାଈଆଳ ଗାଈଟିର ପାଖକୁ ଗଲା । ଗାଈର ବେକରେ ହାତ ଆଉଁସି କହିଲା, '' ହଉ, ଉଠି ଠିଆ ହୁଅ ମା' ! ଏହି ଭାଇଙ୍କ ସାଙ୍ଗରେ ଯାଅ । ତାଙ୍କୁ ଲାତ ମାରିବୁନି । ଶିଙ୍ଗରେ ମଧ୍ୟ ଭୁସାଟେକା କରିବୁ ନାହିଁ ।

ମୁଁ ଗାଈ ପାଖକୁ ଗଲି । କହିଲି, '' ମା', ଏବେ ଉଠ । ଘରକୁ ଚାଲ । ତେଣେ ସେଠାରେ ସମସ୍ତେ ତୁମର ବାଟକୁ ଅନାଇ ବସିଛନ୍ତି । '' ଗାଈଟି ଠିଆ ହେଲା । ବାଛୁରୀଟି ବି ଉଠିଲା । ଦି' ଜଣଯାକ ମୋ ପଛେ ପଛେ ଚାଲିଲେ ।

ମୋ ମନ ଖୁସିରେ କୌଣସି ସୀମା ମାନୁ ନ ଥାଏ । ମୁଁ ଗାଈ ବେକର ଘଣ୍ଟି ଶବ୍ଦ ଶୁଣି ଶୁଣି ଯାଉଥିଲି । ମନେ ମନେ ଭାବୁଥିଲି, '' ଏହି ଗାଈଟି ପାଇଁ ମୁଁ ଗୋଟିଏ ବଢ଼ିଆ ବାଲ୍‌ଟି ରଖିବି । । ଗାଈ ବେକରେ ବାନ୍ଧିବା ପାଇଁ ରୂପାର ଘଣ୍ଟିଟିଏ ବନାଇ ଦେବି । ''

ସଞ୍ଜ ବେଳକୁ ଆମେ ଆମ ଗାଁରେ ପହଞ୍ଚିଗଲୁ । ଝୁମ୍ ଝୁମ ଶବ୍ଦ କରି ଗାଈ ମୋ ପଛେ ପଛେ ଚାଲି ଆସୁଥାଏ । ଗାଁ ଲୋକ ତ ଗାଈଟିକୁ ଦେଖି କାବା ହୋଇଗଲେ ।

କୁହାକୁହି ହେଲେ, '' ଇଏ ଗାଈ ନା ହାତିଣୀ ? '' ଜଣେ କହିଲେ , '' ଇଏ ତ ଇନ୍ଦ୍ରଙ୍କ ଗାଈ ଭଳିଆ ଲାଗୁଛି । ସେ ତାକୁ କେଉଁଠୁ ପାଇଲେ ? ତା ଦାମ୍ କେତେ ହୋଇଥିବ ? ''



ଗାଈ ସହିତ ମୁଁ ଘରେ ପହଞ୍ଚିଲି । ଗାଈର ଆସିବା ଶବଦ ଶୁଣି ପିଲାଙ୍କ ମା' ହସି ହସି ଘରୁ ବାହାରିଲେ ଓ ବାହାର ଫାଟକ ଖୋଲିଲେ । ତାଙ୍କର ଗୋଟିଏ ହାତରେ କୁଙ୍କୁମ ଡବା ଓ ଆର ହାତରେ ଫୁଲ ମାଳଟିଏ ଥାଏ । ଗାଈର ମଥାରେ ସେ ଏକ ସିନ୍ଦୁର ଟୀକା ଦେଲେ । ବେକରେ ମାଳାଟି ପିନ୍ଧାଇ ଦେଲେ । ଗାଈକୁ ବନ୍ଦେଇ ସାରି ଘରକୁ ନେଲେ । ଆଗରୁ ବନାଇ ରଖିଥିବା ରସିଟିକୁ ଗାଈ ବେକରେ ଗଳାଇ ଦେଲେ ।

ପିଲାଙ୍କ ମା' ଗାଈ ପାଇଁ ଘାସ ଆଉ ଚଷୁ ସଜାଡି ରଖିଥିଲେ । କ୍ଷୀର ଦୁହିଁବା ପାଇଁ ପିତଳର ନୂଆ ବାଲ୍‌ଟିଟିଏ କିଣି ରଖିଥିଲେ । ଗାଈ ଗୋଡକୁ ଛନ୍ଦି ଧରିବା ପାଇଁ ପଡ଼ିଶା ଘରୁ ସେ ଫାଶଟିଏ ବି ମାଗି ଆଣିଥିଲେ ।

ସଞ୍ଜ ଗଡ଼ିଲା । ପିଲାଙ୍କ ମା' ବାଲ୍‌ଟି ଧରି ଗାଈର କ୍ଷୀର ଦୁହିଁବାକୁ ବସିଲେ! ଗାଈ ପହ୍ନାରେ ସେ ପାଣି ଛାଟୁ ଛାଟୁ ଗାଈ ଉଠିକି ଦୂରକୁ ପଳାଇଲା ।

ମୁଁ ଭାବିଲି , " ଭୁଲ ହେଲା । " ଆଗ ଗାଈ ସାମନାରେ କୁଣ୍ଡା ମିଶା ପେଜ ରଖିବା କଥା । " ମୁଁ ଗୋଟିଏ ତସଲାରେ ପେଜରେ କିଛି କୁଣ୍ଡା ମିଶାଇ ଗାଈ ଆାଗକୁ ନେଲି । କିନ୍ତୁ ଗାଈ ମତେ ଶିଙ୍ଗ ଉଞ୍ଚେଇଲା । ମୁଁ ଚମକି ପଡି ଦଉଡି ପଳାଇଲି । ପିଲାଙ୍କ ମା'ର ମୁହଁଟି ଶୁଖିଗଲା । ମୁଁ ବି ଗଭୀର ଚିନ୍ତାରେ ପଡ଼ିଲି । ଗାଈଆଳ କହୁଥିଲା , ଗାଈଟି ବୋଲ ମାନିଗଲା ପରେ ମୂଲଟି ଦେବ । ତା' କଥାଟି ପୂରା ଠିକ ମନେ ହେଲା । ମୁଁ ଧୀର ଓ ମିଠା ସ୍ବରରେ ମା'...ମା'... ଡାକି ଗାଈକୁ ମନେଇବାକୁ ଚେଷ୍ଟା କଲି ।

କିଛି ସମୟ ପରେ ଗାଈ ଟିକେ ଶାନ୍ତ ହେଲା ପରି ମନେ ହେଲା । ଏହା ଦେଖି ପିଲାଙ୍କ ମା' ମତେ ଫାଶ କଥା ମନେ ପକାଇ ଦେଲେ । ଫାଶଟି ଆଣି ସେ ଚୁପ୍ ଚାପ୍ ଗାଈ ପାଖକୁ ଗଲେ । ଯେମିତି ଗାଈ ଗୋଡ଼ରେ ଫାଶଟିକୁ ଛୁଆଁଇଲେ , ଗାଈ ଗୋଟିଏ ଲାତ ମାରିଲା ଯେ, ସେ ତଳେ ଗଡ଼ି ପଡ଼ିଲେ । ଏଣେ ଗାଈ ବି ଭିଡ଼ି ହୋଇ ଖୁଣ୍ଟରୁ ତା' ରସିଟି ଛିଡାଇ ଦେଲା । ଅଗଣାରେ ଡେଇଁ କୁଦିବାରେ ଲାଗିଲା । ମୁଁ ଅଡୁଆରେ ପଡ଼ିଗଲି । ଭାବିଲି , " ଏଡ଼େ ବଢ଼ିଆ ସୁନ୍ଦର ଦୁଧିଆଳୀ ଗାଈଟାଏ ଅଥଚ ଏପରି ଅଜବ ଗୁଣ ! " ପୁଣି ମୁଁ କ୍ଷୀର ଦୁହିଁବାକୁ ବାହାରିଲି । ହେଲେ ମତେ ତ ଏହା ଜଣା ନ ଥିଲା । ପୁଣି ଭାବିଲି , " ଆଗ ଦେଖାଯାଉ , ଗାଈ ମିଜାଜ ବିଗୁଡୁଛି ନା ନାହିଁ ?"

ମା'...ମା' ...କହି ମୁଁ ଗାଈ ପାଖରେ ଧୀରେ ପହଞ୍ଚିଲି । ଗାଈ ତ ଚିଡ଼ି ଯାଇଥିଲା । ସେ ସିଧା ମୋତେ ଗୋଡେଇ ଆସିଲା । ତା ମୁଣ୍ଡରେ ଠେଲି ଦେଲା । ମୁଁ ଟିକିଏ ହଟି ଯାଇ ନ ଥିଲେ , କାନ୍ଥ ଓ ଗାଈ ମଝିରେ ଚିପିହୋଇ ମୋ ପ୍ରାଣଟି ବାହାରି ଯାଇଥାନ୍ତା । ମୁଁ ପ୍ରାଣ ବିକଳରେ ଦଉଡି ପଳାଇ ଖଟିଆ ଉପରେ ବସିଗଲି । ଗାଈ ସେଠାରେ ଡ଼େଇଁ କୁଦି ଚକ୍କର କାଟୁଥାଏ ।

ଏହି ନାଟକ ପଡ଼ିଶା ଘରର ଲୋକ ଦେଖିଲେ କ'ଣ ଭାବିବେ ? ଏହି ଚିନ୍ତାରେ ପିଲାଙ୍କ ମା'ଙ୍କ ମୁହଁ ଶୁଖିଯାଇଥାଏ । ସେ ଘରର କବାଟ ଝରକା ସବୁ ବନ୍ଦ କରି ଦେଇଥାନ୍ତି । ଆମେ ଦୁଇ ଜଣଯାକ ମୁହଁକୁ ମୁହଁ ଅନାଅନି ହୋଇ ଚୁପ୍‌ଚାପ୍ ବସିରହିଲୁ । ଆଜି ବଡ଼ ଆଶାରେ ସେ ହାଲୁଆ ଆଉ ବରା ବନାଇଥିଲେ । ରାତିରେ ଭାତରେ କ୍ଷୀର ଗୋଳାଇ ଖାଇବେ ବୋଲି ଭାବିଥିଲେ । କିନ୍ତୁ କ୍ଷୀର ବଦଳରେ ଏବେ ଲାତ ଖାଇବାକୁ ପଡ଼ିଲା; ପୁଣି କି ହନ୍ତସନ୍ତ !



ମୁଁ ଖଟିଆ ଉପରେ ଚୁପ୍‌ଚାପ୍ ବସି ରହି ଭାବିଲି , " ଆରେ ଭାଇ , ଏହାକୁ କାହିଁକି ଗାଇର ଖରାପ ଗୁଣ ବୋଲି କୁହାଯିବ ? ହୁଏତ ମୁଁ ତା ଗୁଣକୁ ଠିକ୍ ଭାବେ ବୁଝି ପାରି ନାହିଁ । ବୋଧେ ଖୁଆଇଲା ବେଳେ ଗାଇକୁ ଆଉଁଷିବା କଥା । ମୁଁ ତ ତା'କୁ ଆଉଁଷିବା କଥା ପୂରା ଭୁଲିଯାଇଛି । "

ମୁଁ ପୁଣି ଉଠିଲି । ଧୀର ଭାବରେ ଯାଇ ମୁଁ ଗାଇ ଆଗରେ କୁଣ୍ଡା ତସଲାଟି ରଖିଲି । ତାକୁ ଧୀରେ ଧୀରେ ଆଉଁଷିବାରେ ଲାଗିଲି । ସେତେବେଳକୁ ଗାଈ ଟିକେ ଥଣ୍ଡା ପଡ଼ି ଯାଇଥାଏ । ସେ ଚୁପ୍‌ଚାପ୍ କୁଣ୍ଡା ଖାଇବାରେ ଲାଗିଲା । ପିଲାଙ୍କ ମା'କୁ

କହିଲି , " ଏବେ ତୁମେ ତା' ଗୋଡ଼ରେ ଆଉ ଫାଶ ଲଗାଅ ନାହିଁ । ଚୁପ୍‌ଚାପ୍ କ୍ଷୀର ଦୁହଁ । ମନେ ହେଉଛି ଏ ଗୋଟିଏ ବଡ଼ ଘରର ଗାଈ । ଏମାନଙ୍କ ପାଇଁ ଫାଶ ଲୋଡ଼ା ହୁଏ ନାହିଁ । "

ସେ ବାଲ୍‌ଟି ଆଣି କ୍ଷୀର ଦୁହିଁବାକୁ ବସିଲେ । ଚର୍‌ର୍ ..... ଚର୍‌ର୍ ..... ହୋଇ ଧଳା ରଙ୍ଗର କ୍ଷୀର ଧାର ବାଲ୍‌ଟିରେ ପଡ଼ିଲା । ଦେଖୁ ଦେଖୁ ବାଲ୍‌ଟି କଣ୍ଠ ଯାଏଁ ଭରିଗଲା । ତା' ଉପରେ ଫେଣ ଜମିଯାଇଥାଏ । ଗାଈ ଟିକେ ବି ହଲଚଲ ହେଲା ନାହିଁ । ମୁଁ ତାକୁ ଯେତିକି ବେଶୀ ଆଉଁଷୁଥାଏ, ସେ ସେତିକି ଅଧିକ କ୍ଷୀର ଦେଉଥାଏ ।

ଆମେ ହାଲୁଆ, ବରା, ମୁଗ ଡ଼ାଲି ଓ କ୍ଷୀର ଭାତ ଖାଇଲୁ । ଗାଈଟିର କ୍ଷୀରର କି ଗୁଣ ଗାଇବି ? ମତେ ତ ଅତି ମଧୁର ଲାଗିଲା । ଜୀବନରେ ମୁଁ କେବେ ବି ଏମିତି କ୍ଷୀର ଖାଇ ନ ଥିଲି । ଆମେ ଗାଈକୁ ହାଲୁଆ ଦେଲୁ । ଏବେ ପିଲାଙ୍କ ମା'ଙ୍କ ଗୋଡ଼ରେ ବଳ ଆସିଗଲା । ବଳିଥିବା କ୍ଷୀରକୁ ସେ ଦହି ବସାଇ ଦେଲେ । ସେ ଭାବୁଥାନ୍ତି , " କେମିତି ରାତି ପାହିବ, ମୁଁ ଦହିରୁ ଚହ୍ଲା ବନାଇ ଅଡ଼ିଶା ପଡ଼ିଶାଙ୍କ ଘରେ ଦେଇ ଆସିବି । "

ଖିଆପିଆ ସରିଲା । ମୁଁ ପୁଣି ଗାଈ ଆଗରେ କିଛି ଘାସ ରଖିଦେଲି । ମିଠା ମିଠା କଥା କହି ବହୁତ ରାତି ଯାଏଁ ମୁଁ ତା'କୁ ଆଉଁଷିଲି । ଶୋଇଲାବେଳେ ମନେ ମନେ ଭାବିଲି , " ସତରେ ଏ ଗାଈଟି ମୋ ଘରର ଲକ୍ଷ୍ମୀ । ମୁଁ ଏହାକୁ ଭଲରେ ପାଳିବି । "

ପିଲାଙ୍କ ମା' ବଡ଼ି ସକାଳୁ ଉଠି ଦହି ଘୋରି ଚହ୍ଲା ତିଆରି କରି ଦେଇଥିଲେ । ଗାଈ ଦୁହିଁବା ବେଳ ହୋଇଯାଇଥିଲା । ତାଙ୍କଠୁ ଦେଖି ମୁଁ ବି କ୍ଷୀର ଦୁହିଁବା ଶିଖିଯାଇଥିଲି । ଦି' ଚାରି ଦିନ ଅଭ୍ୟାସ କଲା ପରେ ମୁଁ ଠିକ୍ ରୂପେ କ୍ଷୀର ଦୁହିଁ ପାରିଲି । ଏହାପରେ ମୁଁ ଗୀତ ଗାଇ ଗାଇ କ୍ଷୀର ଦୁହିଁବାରେ ଲାଗିଲି । ମୋ ଗୀତ ଥିଲା -

" ଆସ ନନ୍ଦ ସୂତ
ବେଗି ବେଗି ଆସ
ଆସ ହେ ଜଲ୍‌ଦି ଆସ
ଗାଈକୁ ମୋ ଦୁହିଁଯାଅ ।

ଅନାଇ ବସିଛି
ପହ୍ନା ଦେଖାଇ
ଲଗାଇ ଦେଉନି ହାତ
ଗାଈକୁ ମୋ ଦୁହିଁଯାଅ ।
ବେଗି ବେଗି ଆସ
ଗାଈ ଦୁହିଁ ଦିଅ
ଆସ ନନ୍ଦ ସୁତ ଆସ
ଗାଈକୁ ମୋ ଦୁହିଁଯାଅ । ''

ପିଲାଙ୍କ ମା' ସବୁବେଳେ ଚହ୍ଲା ଘଷୁଥିଲେ । ପାଖ ପଡୋଶୀଙ୍କୁ ଦେଉଥିଲେ । ପ୍ରଥମେ ପାଖ ଘର ଲୋକ ଆସୁଥିଲେ । କ୍ରମେ ସାହି ସାରା ଲୋକ ଚହ୍ଲା ନେବାକୁ ଆସିବାରେ ଲାଗିଲେ । ଛୋଟ ବାଲ୍‌ଟି ବଦଳରେ ମୁଁ ବଡ଼ ଆକାରର ବଲ୍‌ଟିଟିଏ କିଣିଲି । ଛୋଟ ଠେକି ଜାଗାରେ ବଡ଼ ଠେକିଟିଏ ଆଣିଲି । ଏହା ସବୁତ ଗାଈର ଭଲ ପଣ ଥିଲା ।

ଏହା ଭିତରେ ସାହିର ଲୋକମାନେ ପିଲାଙ୍କ ମା'ଙ୍କୁ ' ପଣ୍ଡିତାଣୀ ' ବୋଲି ଡାକିଲେଣି । ମୁଁ ବି ତାଙ୍କୁ 'ପଣ୍ଡିତାଣୀ' ନାଆଁରେ ଡାକିଲି ।

ଦିନେ ଆମ ପଣ୍ଡିତାଣୀଙ୍କ ମନକୁ କଥାଟିଏ ଆସିଲା । ପ୍ରତି ଦିନ ଚହ୍ଲା ଘଷିବା ତ ଠିକ୍ ଅଛି । କିନ୍ତୁ ଏତେ ସମୟ ଯାଏଁ ଗୋଟିଏ ଜାଗାରେ ବସି ଚହ୍ଲା ଦେବା ବୋଝ ଭଳି ଲାଗିଲାଣି । ଏହା ତାଙ୍କ ପାଇଁ ଏକ ନୂଆ କାମ ବନି ଯାଇଥାଏ ।

ଦିନେ ପଡ଼ିଶା ଘର ମଣି ବୋହୂ ଆସିଲା । ଚହ୍ଲା ଜାଗାଟା ଥୋଇଦେଇ ଗୋଟିଏ କଡ଼କୁ ଠିଆ ହେଲା । ସଙ୍ଗେ ସଙ୍ଗେ ପଣ୍ଡିତାଣୀ କହିଲେ , '' ଦେଖ, ହାତ ଚଲାଉ ଚଲାଉ ଏ ଆସିଗଲେ ଚହ୍ଲା ନେବାକୁ । କେବେ ବି ଭାବିଛ କି ଚହ୍ଲା ଘଷିବାରେ ଟିକେ ହାତ ମିଳାଇ ଦେବି ? ପାଣି ଦି' ଠେକି ଆଣି ଢ଼ାଳି ଦେବି ? ''

ମଣି ବୋହୂକୁ କଥାଟା ଖରାପ ଲାଗିଲା । ପଣ୍ଡିତାଣୀଙ୍କ କଥା ପାଇଁ ନୁହେଁ, ତାଙ୍କ କହିବାର ଢ଼ଙ୍ଗ ଯୋଗୁଁ । ଚହ୍ଲା ଧରି ମୁହଁ ତଳକୁ କରି ସେ ଘରକୁ ପଳାଇଗଲା ।



ଖାଇବା ବେଳ ହେଲା । ଆମେ ଖାଇଲା ବେଳେ ପଣ୍ଡିତାଣୀ ହଠାତ୍ ମୋ ଉପରେ ଗରଜିବାରେ ଲାଗିଲେ । କହିଲେ , " ହଁ, ଗାଈ ଆସିବାରୁ ଆମକୁ ଦୁଧ, ଦହି, ଘିଅ ସବୁ ମିଳୁଛି । କିନ୍ତୁ କଥାଟା ଏଇଆ ଯେ ଚହ୍ଲା ନେବା ଲୋକ ବହୁତ ବଢ଼ିଗଲେଣି, ତାଙ୍କୁ ଚହ୍ଲା ଦେଇ ଦେଇ ମୁଁ ଥକି ଗଲିଣି । ପ୍ରଥମେ ତ ଗୋଟିଏ ଅସୁବିଧା ଥିଲା ଯେ ଆମର ଗାଈ ନ ଥିଲା । ଆମେ ନିଜ ପରିବାର ପାଇଁ ଯେତିକି ଲୋଡ଼ା ସେତିକି କ୍ଷୀର କିଣି ଖାଉଥିଲେ । ଏମିତି କିଛି ଅସୁବିଧା ନ ଥିଲା । "

ମୁଁ ପଣ୍ଡିତାଣୀଙ୍କୁ କହିଲି, " ଶୁଣ, ଏହା ସବୁତ ଆମ ପାଇଁ ଭଲ ଦିନର ଶୁଭ ସଙ୍କେତ । ଆଗରୁ ଲୋକେ ଆମ ଘରକୁ ବା କେଉଁଠି ଆସୁଥିଲେ ? ଏବେ କିନ୍ତୁ ଗଳି ମହଲା ଟପି ଗାଁ ସାରା ଲୋକ ଆମ ଘରକୁ ଆସୁଛନ୍ତି । ଏହା ତ ଆମ ଘର ପାଇଁ ଅତି ଭଲ କଥା । ତୁମେ ତ ଜାଣିଛ ଆମ ସାରା ଗାଁ କୁ ରାଜଉଆସରୁ ବି ଚହ୍ଲା ମିଳେ ନାହିଁ। " କିନ୍ତୁ ମୋର ଏହି କଥା ପଣ୍ଡିତାଣୀଙ୍କ ଉପରେ କିଛି ବି ପ୍ରଭାବ ପକାଇପାରିଲା ନାହିଁ। କଥା ବଢ଼ିଲା, ପୁଣି ଛିଡ଼ିଲା । ଏହା ସହିତ ମୁଁ ଖିଆ ସାରିଲି ।

ସଞ୍ଜ ଆସିଲା । ସବୁଦିନ ପରି ଗାଈ ଫେରିବା ବେଳ ହୋଇଗଲା । ଆମେ ଗାଈକୁ ଘାଗୁଡ଼ି ଟିଏ ପିନ୍ଧାଇ ଥିଲୁ । ତେଣୁ ଗାଈ ଘରକୁ ଫେରିବା ବେଳେ ଆମେ ଦୂରରୁ ଏହାର ଶବଦ ଶୁଣି ଜାଣି ପାରୁଥିଲୁ । ରୁମୁ ଝୁମୁ କରି ପାହୁଲ ପକାଇ ଗାଈ ଯେତେବେଳେ ଘରକୁ ଆସେ, ମୁଁ କବାଟ ଖୋଲି ତା'କୁ ଭିତରକୁ ନେଇଯାଏ ।

ସେ ଦିନ ଗାଈ ଆସିବା ବାଟଟିକୁ ମୁଁ ଚାହିଁ ରହିଥାଏ । କିନ୍ତୁ ଗାଈ ଆସିଲା ନାହିଁ । ଆମ ପାଖ ପଡ଼ୋଶୀଙ୍କର ଗୋଟେ ଦି'ଟା ଗାଈ ଥିଲେ । ସେମାନେ ନିଜ ନିଜ ଘରକୁ ଫେରି ଆସିଥାନ୍ତି । ମୋ ଗାଈକୁ ଖୋଜି ଖୋଜି ମୁଁ ଗାଁ ବାହାରକୁ ଗଲି । ସେତେବେଳକୁ ରାତି ହୋଇଗଲାଣି । ମୋ ମନ କହିଲା , " ଏବେ ଅନ୍ଧାରରେ ଗାଈଟିକୁ କେଉଁଠି ଅବା ଖୋଜିବି ?

ମୋ ମା', ମୋ ଧନ, ବାୟାଣୀ, ଗେଲି, ମୋ ପାଗଳୀ, ମୋ ଜୀବନ ଏମିତି ବିବିଧ ସିନିହବୋଳା ଭାଷା ଲଗେଇ ମୁଁ ଗାଈକୁ ଡ଼ାକୁଥାଏ । କିନ୍ତୁ କେଉଁଆଡୁ ଗାଈର ସୋର୍ ଶବଦ ନ ଥାଏ । ଶେଷକୁ ଗୋଟିଏ ଗଛ ମୂଳରେ ମୁଁ ବସିପଡ଼ିଲି । ଭାବନା ରାଇଜରେ ବୁଡ଼ିଗଲି ।

ଭାବୁ ଭାବୁ ସେ ଦିନର ଦି'ପହର କଥା ମୋ ମନକୁ ଆସିଲା । ମତେ ଲାଗିଲା, ଏହି ଗାଈଟି ଲକ୍ଷ୍ମୀ ଠାକୁରାଣୀ ପରି । ସେ ପଣ୍ଡିତାଣୀ ପାଖେ କାହିଁ କି ରହିବ ?

ମୁଁ ପୁଣି ଡ଼ାକିଲି , " ମୋ ଗାଈଲୋ, ମୋ ମା'ଲୋ, ମୋ ଝିଅ, ପାଗଳୀ, ବାୟାଣୀ,........ ତୁ ଯେଉଁଠି ବି ଅଛୁ, ମୋ ପାଖକୁ ଶୀଘ୍ର ଚାଲିଆ । ଘରକୁ ଫେରିବାଲେ । "

ସତକୁ ସତ ମୋ ଗାଈଟା ଗଛ ଆଡୁଆଳରେ ଠିଆ ହୋଇଥିଲା । ପାହୁଲ ପକେଇ ବାହାରି ଆସିଲା । ଆସି ମୋ ସାମନାରେ ଠିଆ ହେଲା ।

ମୋର ଖୁସି କହିଲେ ନ ସରେ । ଗଦ ଗଦ ମୁଁ ହୋଇ କହିଲି, " ଶୁଣ । ଚାଲେ ଘରକୁ ଯିବା । " ଘରେ ପହଞ୍ଚିଗଲୁ । ମୁଁ କ୍ଷୀର ଦୁହିଁବାକୁ ବସିଗଲି । ପହ୍ନାରେ କ୍ଷୀର ଭର୍ତ୍ତି ହୋଇ ରହିଥାଏ । କିନ୍ତୁ ବୁନ୍ଦାଏ ବି କ୍ଷୀର ବାହାରିଲା ନାହିଁ । ମୁଁ ଭାବିଲି



ଆଜି ଏ ନିଜେ କ୍ଷୀର  ଚୋରାଇଛି । ପଣ୍ଡିତାଣୀ ଛୋଟଲୋକି ଦେଖାଇବାରୁ ସେ ଖୁସି ନୁହେଁ  ।

ମୁଁ କହିଲି , '' ପଣ୍ଡିତାଣୀ, ଆମ ଗାଈ ତ ପୂରା ଶୁଖିଯାଇଛି । ଭଲ ହେଲା, କ୍ଷୀର ଦୁହିଁବା ଆଉ ଚହ୍ଲା ଘଷିବା ଚିନ୍ତା ଗଲା । ଇଏ ତ ଟୋପେ ବି କ୍ଷୀର ଦେଉ ନାହିଁ । ତୁମେ ଯାହା ଚାହୁଁଥିଲ, ତା' ହିଁ ହେଲା । ମୁଁ କହୁଥିଲି ନା , ଆମର ଏଇ ଗାଈ କେଉଁ ଦେବୀଙ୍କ ଅବତାର ବୋଲି । ଦେଖ ଏବେ କ'ଣ ହେଲା ?''

ପଣ୍ଡିତାଣୀଙ୍କୁ ଭା'ରି ଲାଜ ମାଡିଲା । ସେ ମନେ ମନେ ଭାବିଲେ, ଏଥର ସେ ଆଗପରି ଆଉ ମନ ଊଣା କରି କାମ କରିବେ ନାହିଁ ।

କିନ୍ତୁ ସେ ଦିନ ଗାଈ  ଜମା କ୍ଷୀର  ଦେଲା ନାହିଁ । ଗାଈ ଆସିବାର ବର୍ଷେ ହୋଇଯାଇଥିଲା । ତା' କ୍ଷୀର ଦେବା ପରିମାଣ ବଢ଼ିଥିଲା । ଏଥିରୁ ପ୍ରଚୁର ଘିଅ , ଦହି ଆଦି ମିଳୁଥିଲା । କ୍ଷୀର, ଘିଅର ପରିମାଣ ବଢ଼ିବା ଖବରଟି ଶେଷରେ ରାଜାଙ୍କ ପାଖରେ ବି ପହଞ୍ଚୁଥିଲା ।

ଗାଈର ସବୁ କାମ କରିବାକୁ ମୁଁ ଜଣେ ଗଉଡ଼ ମୂଲିଆ ରଖିବାକୁ ଠିକ୍ କଲି । ପରଦିନ ସକାଳେ ଗାଧୁଆ ପାଧୁଆ ପରେ ମୁଁ ପୂଜା ପାଠ ସାରିଲି । ରାଜାଙ୍କ ଉଆସରେ ପହଞ୍ଚିଲି । ଏହି ସମୟରେ ଗାଈଆଳ ପଞ୍ଚମ ଆସିଲା । ବାଲ୍‌ଟି ନେଇ କ୍ଷୀର ଦୁହିଁବାକୁ ଗଲା । ପଞ୍ଚମ ହାତରେ ବାଲ୍‌ଟି ଦେଖି ଗାଈ କି ଆଉ ସମ୍ଭାଳେ ? ଖୁଣ୍ଟରୁ ପଘା ଛିଡ଼ାଇ ସେ ଗୋଡ଼ରେ ଜୋରଦାର୍ ଲାତ ମାରିଲା । ପୁଣି ପଞ୍ଚମକୁ ଶିଙ୍ଗରେ ଠେସି ଧରି କବାଟ ଆଡ଼କୁ ପେଲି ନେଲା । ଏ ଅବସ୍ଥା ଦେଖି ପଣ୍ଡିତାଣୀ ରଡ଼ି ଛାଡ଼ିଲା । ତାଙ୍କ ଶବଦ ଶୁଣି ପଡ଼ିଶା ଘର ଜୀବା ଭାଇ ଦଉଡ଼ି ଆସିଲେ । ଗାଈ ସାମନାକୁ ଯାଇ ପଞ୍ଚମଭାଇକୁ ଗାଈର ଆକ୍ରମଣରୁ ମୁକୁଳାଇ ନେଲେ ।



କିଛି ସମୟ ପରେ ପଣ୍ଡିତାଣୀ ବାହାରିଲେ କ୍ଷୀର ଦୁହିଁବେ । ଗାଈ ତାଙ୍କୁ ବି ଲାତ ମାରି ଗଡାଇଦେଲା । ପଣ୍ଡିତାଣୀ ମୋ ପାଖକୁ ଖବର ପଠାଇଲେ, " ଗାଈ କ୍ଷୀର ଦୁହାଁଇଦେଉନି, ତମେ ଘରକୁ ଆସ । ତମେ ହିଁ କ୍ଷୀର ଦୁହିଁବ । " କିନ୍ତୁ ସେତିକିବେଳେ ମୁଁ ଉଚ୍ଚ ଆସନରେ ବସି ସମସ୍ତଙ୍କ ସାମନାରେ ଗାଈର ଗୁଣ

ଗାଉଥାଏ । କିନ୍ତୁ ଓଲଟା ଖବରଟି ରାଜ ଦରବାରକୁ ଆସିଥିବାରୁ ଏହା ଶୁଣି ମତେ ଭା'ରି ଅପମାନ ଲାଗିଲା । ମୁଁ ଉତ୍ତର ଦେଇ ପଠାଇଲି ," ଦୁହିଁବାକୁ ଦେଉନି ତ ? ନ ଦେଉ । କିଛି ଅସୁବିଧା ନାହିଁ । ସେ ନିଜେ ଦୁହିଁବାକୁ ଦେବ । କିନ୍ତୁ ମୁଁ ଏଇନେ ଯାଇପାରିବି ନାହିଁ । "

ଗାଈ କ୍ଷୀର ଦେବ କ'ଣ, ବଣକୁ ଚରି ଯିବାକୁ ବି ଖୁଣ୍ଟରୁ ପଘା ଖୋଲାଇ ଦେଲା ନାହିଁ । ସେ ରାଗି ଯାଇଥାଏ ।

ମୁଁ ଘରେ ପହଞ୍ଚିଲି । ଗାଈ ମତେ ଦେଖିଲା । ଭିଡି ମୋଡି ହୋଇ ଖୁଣ୍ଟରୁ ପଘାଟି ଛିଡାଇଦେଲା । ସେ ସତେ ଯେମିତି କହୁଥିଲା, " ତୁମକୁ ତ ଏବେ ମାନ ସନମାନ ଲୋଡା । ମୋ ପାଖରେ ତୁମର ଆଉ କି' କାମ ବା' ଅଛି ? ତେଣୁ ମୁଁ ମୋ ବାଟରେ ଚାଲିଲି । "

ସତକୁ ସତ ସେ ଯିବାକୁ ବାହାରିଲା । ଚାଲିବା ବନ୍ଦ କରି ଦୌଡ଼ିବାରେ ଲାଗିଲା । ମୁଁ ଭାବିଲି, ତା ପଛରେ ଗୋଡ଼ାଇବି, ନଚେତ୍ ସେ ଆଉ ମୋ ହାତକୁ ଆସିବ ନାହିଁ । ପୋଥିପତ୍ରକୁ କଡ଼ରେ ଥୋଇ ଦେଇ ମୁଁ ଗାଈ ପଛରେ ଧାଇଁଲି । ଆଗେ ଆଗେ ଗାଈ ଦଉଡୁ ଥାଏ । ତା ପଛରେ ମୁଁ ଧାଇଁ ଧାଇଁ ଥକି ଗଲି । ବଡ଼ ପାଟିରେ ଡ଼ାକିଲି , " ମୋ ପାଗେଳି ଲୋ, ମୋ ବାୟାଣୀ ଲୋ, ମୋ ଗାଈ ଲୋ, ମୋ ମା' ଲୋ ,....... ରହି ଯା'ଲୋ.... ଟିକେ ରହିଯା' । ମୁଁ ପରା ତୋ ପଛେ ପଛେ ଚାଲିଛି । "

ମୋ ପାଟି ଶୁଣି ଗାଈ ଠିଆ ହୋଇଗଲା । ମୁଁ ତା' ପାଖକୁ ଗଲି । କହିଲି , " ମୋ ଧନ ଜୀବନ । ଏମିତି ଅଭିମାନ କରି କୁଆଡେ ଯାଉଛୁ ? ମୁଁ ଦିନେ କ୍ଷୀର ଦୁହିଁଲିନି ବୋଲି ତୁ ମୋ ଉପରେ ଏମିତି ରାଗ କରିଛୁ ? "

ଲାଜେଇଲା ଭଳି ଢ଼ଙ୍ଗରେ ଗାଈ ଘର ଆଡ଼େ ଚାଲିଲା । ରାତି ବାରଟା ବେଳକୁ ମୁଁ ଘରେ ପହଞ୍ଚିଲି । ଆଉ ମୋର ଗଉଡିଆ କାମ ଆରମ୍ଭ କରିଦେଲି । ସେ ଦିନ ରାତିରେ ଗାଈ ଅତି ମିଠା କ୍ଷୀର ଦେଲା । ସେହି ଦିନଠୁଁ ଯାହା କାମ ଥିଲେ ବି କ୍ଷୀର ଦୁହିଁବା କାମଟି ମୋ ଜିମାରେ ରହିଲା । ସେହି ଦିନଠୁ ମନେ ମନେ ରାଣ ଖାଇଲି, " ମୁଁ ଦିନେ ରାଜା ହୋଇଗଲେ ବି ଗାଈ କାମଟି ନିଶ୍ଚୟ ନିଜେ କରିବି । "



ଗାଈର ରୂପ, ଗୁଣର ଆଲୋଚନା ସବୁଆଡେ ବଢ଼ିଲା । ଏମିତିକା ଗାଈଟିଏ ଆମ ମୁଲକରେ ନ ଥିଲା । ରାଜାଙ୍କ ଘରେ ବି ଏମିତି ଗାଈ ନ ଥିଲେ । ରାଜାଙ୍କ ଇଚ୍ଛା ଥିଲା ଆମ ଗାଈଟି ତାଙ୍କ ଉଆସରେ ରହନ୍ତା । ଦିନେ ରାଜା ମତେ ଏହି କଥା କହିଲେ , " ମହାଭାଗ, ଆପଣଙ୍କ ଗାଈଟି ଆମକୁ ଦେଇଦିଅନ୍ତୁ । ଆମ ରାଜ ଉଆସର ଶୋଭା ବଢ଼ିବ । ଆପଣଙ୍କ ଘରକୁ ଏ ଗାଈଟି ଶୋଭା ଦେଉନି । "

ଏ କଥା ମୁଁ କେମିତି ବା' ମାନିଥାନ୍ତି ? ସିଧାସଳଖ ମନା କରିଦେଲି । ମୋ ଠାରୁ ନାହିଁ ଶୁଣି ରାଜା ରାଗିଗଲେ । ସାଙ୍ଗେ ସାଙ୍ଗେ ହୁକୁମ୍ କଲେ, " ଏହାଙ୍କର ଘର ବାଡି ସବୁ ଜବତ କର । ଗାଈଟିକୁ ନେଇଆସି ରାଜଉଆସରେ ରଖ । " କିନ୍ତୁ ଗାଈ ଭଲ ମୋ ଘର ଛାଡି କାହିଁକି କୁଆଡେ ଯିବ ? ସେ ମୋ ପାଖରେ ଠିଆ ହୋଇ ରହିଲା । ଲୋକେ ତା ବେକରେ ଜବରଦସ୍ତ ପଘା ଲଗାଇ ଟାଣି ଟାଣି ଥକି ଗଲେ, ସେ କିନ୍ତୁ ନିଜ ଜାଗାରୁ ଅଳପ ବି ଚଙ୍କିଲାନି ।

ରାଜାଙ୍କଲୋକ ମତେ ବାନ୍ଧିନେଲେ । ପଣ୍ଡିତାଣୀଙ୍କୁ ଘରୁ ବାହାର କରିଦେଲେ । ଘରେ ଶାସନ ତାଲା ପକାଇଦେଲେ । ଆମକୁ ଜେଲ୍‌କୁ ନେଇଗଲେ ।

ଗାଈ ଆମ ପଛେ ପଛେ ଆସିଲା । ଆମକୁ ଜେଲ୍‌ରେ ବନ୍ଦ କରିଦେଇ, ସେମାନେ ଗାଈକୁ ରାଜ ଉଆସ ଆଡକୁ ଭିଡିଲେ । କିନ୍ତୁ ଗାଈକୁ ସେଠାରୁ ହଟାଇବା ପାଇଁ କାହାର ଅବା ବଳ ଥିଲା ?

ଶେଷରେ ରାଜା ଗାଈ ପାଖରେ ପହଞ୍ଚିଲେ । ଗାଈକୁ ନେବା ପାଇଁ ବହୁତ ଚେଷ୍ଟା ଚାଲିଲା । କିନ୍ତୁ ଗାଈ ଟିକେ ବି ହଲିଲାନି କି ଚାଲିଲାନି । ସମସ୍ତଙ୍କୁ ଶିଙ୍ଗ ଉଁଚେଇଲା ।

ରାଜା ଥକିଗଲେ । କହିଲେ, " ଶୁଣ, ଏ ଗାଈ ଆମ କପାଳରେ ଲେଖା ନାହିଁ । ଯାଅ ପଣ୍ଡିତେଙ୍କୁ ଗାଈଟି ଫେରାଇ ଦେଇଆସ । "

ଦିନେ ଆମ ଘରକୁ ଜଣେ ବାବାଜୀ ଆସିଥିଲେ । ସେତେବେଳେ ଆମ ଘରକୁ ଅନେକ ସାଧୁ ବାବାଜୀ ଆସୁଥିଲେ । ଆମ ଉପରେ ଈଶ୍ୱରଙ୍କର କୃପା ଥିଲା । ଆମେ ବି ଖୁସିରେ ସମସ୍ତଙ୍କର ସେବା କରୁଥିଲୁ ।

ବାବାଜୀ ମହାଶୟ ଆମ ଗାଈକୁ ଦେଖିଲେ । ତାଙ୍କର ଲୋଭ ହେଲା । ସେ ମୋ ପାଖକୁ ଆସି କହିଲେ, " ପଣ୍ଡିତ ମହାଶୟ, ଯାହା ମୂଲ ନେବେ ନିଅନ୍ତୁ ; କିନ୍ତୁ ଏ ଗାଈଟି ମତେ ଦେଇ ଦିଅନ୍ତୁ । "

ମୁଁ କହିଲି " ବାବାଜୀ ମହାରାଜ, କହିବେ ତ ମୁଁ ମୋ ମୁଣ୍ଡଟି କାଟି ଦେବି । କିନ୍ତୁ ଗାଈ କଥା ମତେ କହନ୍ତୁ ନାହିଁ । "

ବାବାଜୀ କହିଲେ, " ମୋ କଥା ଶୁଣନ୍ତୁ । ମୁଁ ଆପଣଙ୍କୁ ସବୁ ମନ୍ତର ଯନ୍ତର ଶିଖାଇ ଦେବି । ପୂଜା ପାଠ ସବୁ ଶିଖାଇ ଦେବି । ସଫଳତାର ବାଟ ବତାଇ ଦେବି । " ମୁଁ ତଥାପି ମନା କଲି ।

ବାବାଜୀ ଚିଡିଗଲେ । ରାଗିମାଗି କହିଲେ, " ଠିକ୍ ଅଛି । ତେବେ ତୁମକୁ ମୁଁ ଅଭିଶାପ ଦେବି । ତୁମର ନାହିଁ ନ ଥିବା କ୍ଷତି କରିଦେବି । "

ମୁଁ କହିଲି, " ବାବାଜୀ ମହାଶୟ ! ଆପଣ ଯାହା କରିବେ କରନ୍ତୁ । ମୁଁ କିନ୍ତୁ ଅଟଳ । ଯାହା ହେଲେ ବି ମୁଁ ମୋ ଗାଈଟିକୁ ଆପଣଙ୍କୁ ଦେଇ ପାରିବି ନାହିଁ । ମୋ

ପ୍ରାଣ ପଛେ ଚାଲି ଯିବ, କିନ୍ତୁ ଗାଈ ଦେବି ନାହିଁ । ଏହି ଗାଈ ତ ମୋ ଘରର କାମ ଧେନୁ । ମୋ ଧନ ... ମୋ ସମ୍ପଦ । ମୋ ଘରର ଶୋଭା । ''

ବାବାଜୀ କିଛି ସମୟ ତୁନି ପଡିଲେ । ରାତି  ଭୋଜନ ସାରି ଶୋଇବାକୁ ଗଲେ । ରାତି ଅଧରେ ଝମ୍.. ଝମ୍ ଶବଦ ଶୁଭିଲା । ମୋ ନିଦ ଭାଙ୍ଗିଗଲା । ମୁଁ ଉଠିକି ଦେଖିଲି ଯେ ..... ବାବାଜୀ ମହାପ୍ରଭୁ ଗାଈର ପାଦତଳେ ଅଛନ୍ତି । ଆଉ ଗାଈ ତାଙ୍କୁ ଚକଟି ପକାଉଛି । ମୁଁ  ହଠାତ୍ ପାଟି କଲି, '' ଏ ବାୟାଣୀ ମା'ରେ ..... ଏମିତି ଲୋଭ ତ ମଣିଷ ମନରେ ରହିଛି । ''



ଗାଈ ବାବାଜୀଙ୍କୁ ଛାଡିଦେଲା । ବାବାଜୀ ପ୍ରାଣ ବିକଳରେ ପଳାଇଗଲେ । ସେ ଗାଈକୁ ଚୋରାଇ ନେବାକୁ ବାହାରିଥିଲେ ଶେଷରେ ତାଙ୍କୁ ହିଁ ଜୀବନ ନେଇ ପଳାଇବାକୁ ପଡିଲା ।

ଗାଈର କଥା ଚାରିଆଡ଼େ ଲୋକେ ଶୁଣିଲେ । ସେଥିପାଇଁ ବାବାଜୀଙ୍କ ଭଳି ଲୋକ ସବୁ ତା'କୁ ସାଥିରେ ନେଇଯିବାକୁ ଆସୁଥିଲେ । କେବେ କେବେ ରାଜ

ପରିବାରର ଲୋକ ବି ବେଶ ବଦଳାଇ ଆସି ଗାଈଟି ମାଗୁଥିଲେ । ଏ ସବୁ ଦେଖି ଦେଖି ମତେ ଭା'ରି ବିରକ୍ତ ଲାଗିଲା । ଲୋକ ତ ଗାଈକୁ ନେଇ ତାଙ୍କ ଘରେ ରଖିବାକୁ ଚାହୁଁଥିଲେ । ଏମିତିକା ବଢ଼ିଆ ସୁନ୍ଦର ଗାଈଟିଏ କାହାକୁ ଅବା ଭଲ ଲାଗିବ ନାହିଁ ? କିନ୍ତୁ ମତେ ଏହା ଭଲ ଲାଗୁ ନ ଥାଏ । ମୁଁ ଭାବୁଥାଏ, ଏମାନେ ମତେ କାହିଁକି ଏମିତି ହଇରାଣ କରୁଛନ୍ତି ? ଏମାନେ ସିନା ଖାଲି ମାଗି ଦେଉଛନ୍ତି, କିନ୍ତୁ ମୋର ତ ସତ୍ୟାନାଶ ହୋଇଯିବ ନା । ପରେ ଧୀରେ ଧୀରେ ମୁଁ ଏଥିସହ ଅଭ୍ୟସ୍ତ ହୋଇଗଲି ।

ଦିନେ ଗାଈ ଜଙ୍ଗଲରୁ ଫେରିବାରେ ଅନେକ ଡେରି ହେଲା । ମୁଁ ତାକୁ ଖୋଜିବାକୁ ବାହାରିଲି । ସାରା ଜଙ୍ଗଲରେ ଖୋଜି ବଲିଲି । କିନ୍ତୁ କେଉଁଠି ବି ତା'କୁ ପାଇଲି ନାହିଁ । ମୁଁ ଭାବିଲି , " ତା'କୁ କିଏ ଚୋରେଇ ନେଇ ଗଲା କି ଆଉ ? ନା କିଏ ଅଟକାଇ ଦେଇଛି । "

ଘରକୁ ନିରାଶ ହୋଇ ଫେରିଲି । କିନ୍ତୁ ଘରେ ପହଞ୍ଚିଲା ବେଳକୁ ଗାଈ ଆସି ଠିଆ ହୋଇଥାଏ । ପରେ ଜାଣିଲି ଯେ , ସଗରାମପୁର ଜମିଦାର ତାକୁ ନେଇ ଯାଇଥିଲେ । ଗାଈ ତାଙ୍କୁ ଶିଙ୍ଗରେ ଭୁଷି ନିଜେ ଖସି ପଳାଇ ଆସିଲା ।

ଏବେ ବି ଗାଈ ଚିନ୍ତା ମୋ ମୁଣ୍ଡରେ ରହିଥିଲା । ଜମିଦାର ତାକୁ ନେଇଯାଇଥିଲେ ଜାଣି ମୋ ଚିନ୍ତା ଆହୁରି ବଢ଼ିଗଲା । ମୁଁ ଗାଈକୁ ବଣକୁ ଛାଡିବା ବନ୍ଦ କରିଦେଲି । ନିଶ୍ଚିନ୍ତ ହୋଇ ରହିଲି ଯେ , ଗାଈକୁ ଆଉ କେହି କୁଆଡେ ନେଇ ଯାଇ ପାରିବ ନାହିଁ ।

ଗାଈ ଦିନେ ଦୁଇ ଦିନ ଘରେ ରହିଲା । ତୃତୀୟ ଦିନକୁ କିନ୍ତୁ ପଘା ଛିଡାଇ ସେ ଜଙ୍ଗଲରେ ହାଜର । ତିନି ଦିନ ଯାଏଁ ଘରକୁ ଆସିଲା ନାହିଁ । ମୁଁ ଖୋଜା ଖୋଜି ଅଥୟ ହେଲି । ତିନି ଦିନ ପରେ ତାକୁ ଗୋଟିଏ ଗଛ ମୂଳରେ ବସିଥିବା ଦେଖିଲି ।



ଗାଁରେ ଲୋକେ ମତେ କହିଲେ , " ପଣ୍ଡିତ ମହାଶୟ , ଗାଈଟା ତୁମର ବଡ଼ ଅଜବ । ଇଏ ନା କିଛି ଖାଉଛି ନା କିଛି ପିଉଛି । ଖାଲି ମଝିରେ ମଝିରେ ଗୋଟିଏ ଲେଖାଁ ଦୀର୍ଘ ନିଶ୍ୱାସ ଛାଡୁଛି । ତାକୁ ଆମେ ଖୋଇବାକୁ ଚେଷ୍ଟା କଲୁ । କିନ୍ତୁ ସେ ତାହା ବି ଖାଇଲା ନାହିଁ । ମୁଖିଆ ଘର ତାକୁ ତାଙ୍କ ଘରକୁ ନେବାକୁ ଚାହିଁଲେ , କିନ୍ତୁ ସେ ଜମା ଗଲା ନାହିଁ ।"

ମତେ ଦେଖି ଗାଈ ଡ଼ିଆଁ ମାରି ଦଉଡି ଆସିଲା । ତା' ମୁଣ୍ଡକୁ ମୋ ଛାତିରେ ଲଗାଇ ରଖି ଠିଆ ହେଇ ରହିଲା । ସତେ ଯେମିତି ସେ କହୁଥାଏ , " ମତେ ଭଲା କିଏ ନେଇଯିବ ? ତୁମକୁ ଛାଡ଼ି ମୁଁ କ'ଣ କୁଆଡ଼େ ଯାଇ ପାରିବି ? ଖୁଣ୍ଟ ଉପାଡ଼ି ସିନା ଗଳେଇ ଆସିଲି । କିନ୍ତୁ ସେଦିନଠୁ ଏଇଠି ହିଁ ବସିଛି । ଜମିଦାରର ଏଡେ ବହପ ଯେ ସେ ମତେ ନେଇଯିବ ? "

ମୁଁ ଗାଈକୁ ସାଉଁଳାଇଲି । ନିଜ ହାତରେ ଛଣ ଧରି ତା'କୁ ଖୁଆଇ ଦେଲି । ତିନିଦିନ ପରେ ସେ ତା'ର ଉପାସ ଛାଡିଲା । ମୋର ବି ତିନିଦିନ ଉପାସ ଚାଲିଥିଲା । ମୁଁ ତା'ର କ୍ଷୀର ପିଇ ମୋ ଉପାସ ଭାଙ୍ଗିଲି ।

ଗାଁରେ ଏବେ ମୋ ଗାଈର ମହିମା ବେଶ୍ ବଢ଼ିଯାଇଛି । ଗାଁ ଲୋକେ ଆମ ଗାଈକୁ କାମଧେନୁ ବୋଲି କହିଲେଣି । ଏବେ ଗାଁର ଘରେ ଘରେ ଗାଈର ପୂଜା ଚାଲିଛି । ଗୋ ମାତାର ସେବା କରାଯାଉଛି । ପୂରା ଗାଁଟାରେ ଏମିତି ଗୋଟିଏ ବି ଘର ନାହିଁ ଯେଉଁଠି କି ଗାଈ ନ ଥିବ । ଗାଈଙ୍କ ସହିତ ବାଛୁରୀ ବି ଅଛନ୍ତି । ପ୍ରତି ସକଳେ ଗାଈ ସବୁ ଗୋଠରେ ପାଖ ବଣକୁ ଚରିବାକୁ ଯାଉଛନ୍ତି ।

ଆମ ଗାଁ ବଣ ଏବେ ଆଉ ବଣ ହୋଇ ନାହିଁ । ଏବେ ତାହା ବହୁତ ସୁନ୍ଦର ଦିଶିଲାଣି । ଗାଈ ସେଠାରେ ଠାଆକୁ ଠାଆ ବସୁଛନ୍ତି । ପାକୁଳି କରୁଛନ୍ତି । ତାଙ୍କ ବେକ ଘଣ୍ଟିର ଠନ୍ ଠନ୍ ଶବଦ ଜଙ୍ଗଲ ସାରା ଖେଳି ଯାଉଛି । ଗାଈଆଳ ପିଲାଙ୍କ ପାଇଁ ତାଙ୍କ ମାଁ'ମାନେ ଖାଇବାକୁ ନେଇଛନ୍ତି । ଗାଁର ଭାଇଭଉଣୀମାନେ ଗାଈଙ୍କୁ କିଛି ନା କିଛି ଖାଇବାକୁ ଦିଅନ୍ତି । ସଞ୍ଜ ହେଲେ ଗାଈ ସବୁ ଗୋଠରୁ ଘରକୁ ଫେରନ୍ତି । ଆମ ଗୋମାତା ସମସ୍ତଙ୍କ ଆଗରେ ଟହଲି ଟହଲି ପାହୁଲ ପକାଇ ଘରକୁ ଫେରନ୍ତି । ଆମ ଗାଁଟା ଏବେ ଗାଈ ଗୋରୁଙ୍କର ଗାଁ ହେଇଗଲାଣି । ଆମେ ସମସ୍ତେ ଗଉଡ଼ ହୋଇସାରିଲୁଣି ।

ଘର ମୁହାଁ ହୋଇ ଆସୁଥିବା ଗାଈ ସବୁ ହମ୍ବା ହମ୍ବା ରଡ଼ି ପକାନ୍ତି । ତାଙ୍କ ହମ୍ବା ରଡ଼ି ଶୁଣି ଅଗଣାରେ ବନ୍ଧାଥିବା ବାଛୁରୀଗୁଡ଼ିକ ବି ହମ୍ବା ରଡ଼ି କରିବା ଆରମ୍ଭ କରିଦିଅନ୍ତି ।

ସଞ୍ଜ ଗଡ଼ିବା ସାଙ୍ଗକୁ ପ୍ରତି ଘରର ବାଲ୍‌ଟି ଭିତରକୁ ଚର୍‌ର୍‌.... ଚର୍‌ର୍‌..... ଶବଦ କରି ଦୁଧର ମିଠାଧାର ଲମ୍ବିଯାଏ । ବଳକା କ୍ଷୀରରେ ଦହି ବସାଯାଏ । ଦହିରୁ ଚହ୍ଲା ହୁଏ । ଲହୁଣୀ ମରାଯାଏ । ଗାଁରେ ଦୁଧ ଘିଅ ବହୁତ ହେଲାଣି । ଦୁଧ , ଘିଅ ଆମର ସମ୍ପଦ । ଏହା ଖାଇ ଆମ ପିଲେ ତାଗଡ଼ା ହେଲେଣି ।

ଏସବୁ ହେଉଛି ଗାଈ ମାନଙ୍କର କରାମତି ।

ଗୋ ମାତାଙ୍କ ସେବାର ସୁଫଳ ଆମେ ପାଉଛୁ ।

ଗୋ ମାତାଙ୍କର ଗୁଣ କହିଲେ ନ ସରେ ।





## ଗିଜୁ ଭାଇଙ୍କ ପରିଚୟ

ଜନ୍ମ : ୧୫-୧୧-୧୮୮୫ ଶେଷ ନିଃଶ୍ୱାସ : ୨୩-୬-୧୯୩୯

ତାଙ୍କୁ ପିଲାଏ ଅତି ଆଦରରେ " ନିଶବାଲୀ ମାଆ " ବୋଲି ଡାକୁଥିଲେ । ବଡ଼ ମଣିଷଙ୍କ ଆଖିରେ ସେ ଥିଲେ " ପିଲାଙ୍କ ଗାନ୍ଧିଜୀ " । ଗିଜୁ ଭାଇ ବାଧେକାଙ୍କର ଏତିକି ପରିଚୟ ଯଥେଷ୍ଟ ଅଟେ । ସମାଜରେ ଶିକ୍ଷାର ଗୁଣର ବିକାଶ ପାଇଁ ସେ ଏକା ଏକା ଗଭୀର ଚେଷ୍ଟା କରିଥିଲେ ।

ସେ ଗୁଜରାଟର କାଥିଆୱାର୍ଡ଼ ଅଞ୍ଚଳରେ ୧୮୮୫ ମସିହାରେ ଜନ୍ମ ହୋଇଥିଲେ । ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ସାରିବା ପରେ ସେ ଦକ୍ଷିଣ ଆଫ୍ରିକା ଯାଇଥିଲେ । ସେଠାରୁ ସେ ଭାରତ ଫେରିଆସିଥିଲେ । ବମ୍ବେରେ ଆଇନ ପଢ଼ା ସାରି ସେ ଓକିଲାତି ଆରମ୍ଭ କରିଥିଲେ । ଏସବୁ କାମ ବିଷୟରେ ପଢ଼ିଲା ବେଳେ ଆମକୁ ଏହା ଗାନ୍ଧିଜୀଙ୍କ ଓକିଲାତି ଜୀବନର ଆରମ୍ଭ ପରି ଲାଗେ । କିନ୍ତୁ ଏହା ପରେ ଦୁହିଁଙ୍କ କାମର ପରିସର ବଦଳିଗଲା । ଗାନ୍ଧିଜୀ ରାଜନୈତିକ କ୍ଷେତ୍ରରେ

ଦେଶର ସ୍ୱାଧୀନତା ଓ ସର୍ବାଙ୍ଗୀନ ବିକାଶ ଦିଗରେ ସଂଗ୍ରାମ କଲେ । ଗିଜୁ ଭାଇ ଶିକ୍ଷାରେ କେତେକ ମୌଳିକ ସୁଧାର ପାଇଁ ଅଣ୍ଟା ଭିଡିଲେ ।

ଶିକ୍ଷା ପ୍ରତି ତାଙ୍କର ଏକ ସ୍ୱତନ୍ତ୍ର ଆକର୍ଷଣ ଥିଲା । ବିଶେଷ କରି ପିଲାଙ୍କ ପାଇଁ ଏକ ବାସ୍ତବବାଦୀ ଓ ଜୀବନ ଭିତ୍ତିକ ଶିକ୍ଷା ପାଇଁ ସେ ଲାଗିଥିଲେ । ପ୍ରଚଳିତ ଦିଗହୀନ ଶିକ୍ଷା ଠାରୁ ନିଜ ପୁଅକୁ ଦୂରେଇବା ପାଇଁ ସେ ବିଭିନ୍ନ ବିକଳ୍ପ ଚିନ୍ତା କରିଥିଲେ । ଶିକ୍ଷା ସଂକ୍ରାନ୍ତୀୟ ବହି ସବୁ ପଢ଼ି ସେ ପୁଅ ପାଇଁ ଏକ ନୂଆ ବାଟ ବାହାର କରିଥିଲେ । ଏହି ସମୟରେ ସେ ଓକିଲାତି ଛାଡି ଶ୍ରୀ ଦକ୍ଷିଣ ମୂର୍ତ୍ତି ବିଦ୍ୟାଭବନ ନାମକ ଏକ ସ୍କୁଲରେ ଯୋଗ ଦେଲେ । ଏଠାରେ ୪ ବର୍ଷ ମନ ଦେଇ ଲାଗିବା ପର ସେ କିଛି ନୂଆ ଧାରଣା କରିପାରିଥିଲେ ।

ଏଥର ସେ ଭାବନଗର ଠାରେ " ବାଳ ମନ୍ଦିର "ନାମକ ଶିକ୍ଷାକେନ୍ଦ୍ରଟିଏ ଆରମ୍ଭ କଲେ । ଅଢେଇ ବର୍ଷରୁ ୬ ବର୍ଷର ପିଲାମାନେ ଏଠାରେ ଏକ ମୁକ୍ତ ବାତାବରଣ ପାଇଲେ । ଏଠାରେ ପିଲାଙ୍କ ମନଲାଖି ବିଭିନ୍ନ ଗତିବିଧି କରାଯାଉଥିଲା । ନାଚ, ଗୀତ, ଖେଳ, ଚିତ୍ର, ଗପ, ଗଛ ଚଢ଼ା, ଆଦି ଅନେକ କାମରେ ପିଲା ଲାଗି ରହୁଥିଲେ । ମାଡ଼, ଗାଳି, ଅପମାନ, ଧମକ ଆଦି ଏଠାରେ ଜମା ନ ଥିଲା । ପ୍ରତ୍ୟେକ ପିଲାର ପ୍ରତିଭାର ବିକାଶ ପାଇଁ ଏଠାରେ ଏକ ଖୋଲା ପରିବେଶ ରଖଯାଇଥିଲା ।

ବାଳମନ୍ଦିର ଛଡା ବାହାର ସ୍କୁଲର ପିଲା ଓ ଶିକ୍ଷକଙ୍କ ପାଇଁ ସେ ଅନେକ ବହି ଲେଖିଥିଲେ । ଦେଶର ସ୍ୱାଧୀନତା ସଂଗ୍ରାମ ଓ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ତାଙ୍କୁ ପ୍ରେରଣା ଯୋଗାଉଥିଲା । ପିଲାଙ୍କ ବିକାଶ ମାଧ୍ୟମରେ ଦେଶର ଭବିଷ୍ୟତକୁ ଗଢ଼ିବା ପାଇଁ ସେ ସ୍ୱପ୍ନ ଦେଖିଥିଲେ । ପିଲାଙ୍କ ପ୍ରତି ଶିକ୍ଷକ, ଅଭିଭାବକ ଓ ସମାଜର କୌଣସି କଠୋରତାକୁ ସେ ସହି ପାରୁ ନ ଥିଲେ । ତାଙ୍କରି ଭାଷାରେ ..... " ପିଲାଏ ଘରେ ଓ ସ୍କୁଲରେ ବେତମାଡ଼ ଖାଉଥିବା ଯାଏଁ ମୁଁ କେମିତି ଶାନ୍ତିରେ ରହିବି ? " ଏହି ସାମାଜିକ ସଂସ୍କାର ପାଇଁ ସେ ଏକ ' ବାନର ସେନା ' ଗଢ଼ିଥିଲେ । ପିଲାଙ୍କ ବିଷୟରେ ଓ ପିଲାଙ୍କ ପାଇଁ ସେ ୨୦୦ ରୁ ଅଧିକ ବହି ଲେଖିଥିଲେ । ୧୯୩୯ ମସିହାରେ ସେ ଆଖି ବୁଜିଥିଲେ ।

'ମୋ ଗାଈ ' ବହିଟି ଗିଜୁ ଭାଇଙ୍କର ଗୋଟିଏ ଛୋଟ ଅଥଚ ଭାବପୂର୍ଣ୍ଣ

କାହାଣୀ । ଏହା ମାଧ୍ୟମରେ ସେ ଗୋ-ମାତାର ଗୁରୁତ୍ୱ ସାମାଜିକ, ପାରିବାରିକ, ମାନବିକ ଓ ଆର୍ଥିକ ଦୃଷ୍ଟିରୁ ବିଶ୍ଳେଷଣ କରିଛନ୍ତି । ଗାଈକୁ ଏକ କ୍ଷୀର ଦିଆ ଯନ୍ତ୍ର ଭାବେ ଦେଖି ଦେଶ ବିଦେଶରେ ମଣିଷ ତା' ପାଇଁ କେତେ ନିଷ୍ଠୁର ବ୍ୟବହାର ଦେଖାଉଛି । ଏହି ଦୃଷ୍ଟିକୋଣକୁ ବଦଳାଇବା ପାଇଁ ଗିଜୁ ଭାଇଙ୍କ '' ମୋ ଗାଈ '' ଏକ ପଥ ପ୍ରଦର୍ଶକ ।

ଗାଈ ଆମ ପାଇଁ ଦ୍ୱିତୀୟ ମାଆ । ମା'ଙ୍କୁ ହରାଇଥିବା ପିଲାଙ୍କ ପାଇଁ ସେ ହିଁ ମାଆ । ସେ ଆମ ପାଇଁ କେତେ ଗୁରୁତ୍ୱପୂର୍ଣ ଭୂମିକାଟିଏ ନିଏ । ଖାଲି କ୍ଷୀର ନୁହେ ତାର ପ୍ରତି କାମ ଓ ଅଂଶ ଆମ ପାଇଁ ଆଶୀର୍ବାଦ । ଆମକୁ ସେ ଯେତିକି ଦିଏ , ତା' ଅନୁଦାନ ରୂପେ ଆମେ ତାକୁ କ'ଣ ଦିଅନ୍ତି ?......

ସେ ବି ଚାହେଁ ଆମ ଠାରୁ ଉପଯୁକ୍ତ ଯତ୍ନ , ସ୍ନେହ ଓ ଆଦର । ସେଇଟା ତାର ହକ୍ । ଆମେ ତାକୁ ସେତିକି ଦେଲେ ଆମକୁ ସେବି ସେତିକି ଆପଣାଏ ଓ ଭରସିପାରେ । ଆମେ କେବଳ ଗାଈକୁ ପାଳନ୍ତି ନାହିଁ , ସେ ବି ଆମକୁ ପାଳେ ।

'ମୋ ଗାଈ' ପୁସ୍ତିକାଟି ଏହି କଥାଟି କହୁଛି । ଆମ ଠାରୁ ଗାଈର ହକ୍ ପାଇଁ ଓକିଲାତି କରୁଛି । ଆମେ ତାକୁ ଉଚିତ ମର୍ଯ୍ୟାଦା ଦେବାନି ?

